କବିସମ୍ରାଟ

ଉପେନ୍ଦ୍ରଭଞ୍ଜଙ୍କ ବିରଚିତ

# ଚନ୍ଦ୍ରରେଖା



ମୂଲ୍ୟ—ସାତ ଟଙ୍କା ମାତ୍ର

# ସୂଚନା

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ବହୁ କାବ୍ୟ, କବିତା, ଗୀତ, ଦୋହା ପ୍ରଭୃତି ଲେଖିଯାଇ ଅଛନ୍ତି। ତା ମଧ୍ୟରୁ "ଚନ୍ଦ୍ରରେଖା" କାବ୍ୟ ଗୋଟିଏ। ଚନ୍ଦ୍ରରେଖା କାବ୍ୟ ପୂର୍ଣ୍ଣ ପ୍ରକାଶ ହୋଇ ନାହିଁ, ଦୁଇଟି ମାତ୍ର ଛାନ୍ଦ ମିଳିଅଛି। ଏହା ଭଞ୍ଜନଗରର 'ଭଞ୍ଜ-ସାହିତ୍ୟ ପରିଷଦ' ପକ୍ଷରୁ ପ୍ରକାଶିତ। ଏହି କାବ୍ୟର ବିଷୟ ହେଲା—

ଶିବ ନକେତନପୁର ରାଜ୍ୟର ନୃପତି ବିଧୁଶେଖର ଓ ତାଙ୍କର ରାଣୀ କଳାବତୀ, ଦୁହିତା ପ୍ରାପ୍ତି ଉଦ୍ଦେଶ୍ୟରେ ଶିବ ଓ ପାର୍ବତୀଙ୍କୁ ପୂଜା କରିବାରୁ ଗୋଟିଏ ଝିଅ ହେଲା—ତାହାର ନାମ 'ଚନ୍ଦ୍ରରେଖା'। ସେହି ଅନିନ୍ଦ୍ୟସୁନ୍ଦରୀ ରାଜକୁମାରୀ ଜଣେ ଯୋଗିନୀଠାରୁ ଚନ୍ଦ୍ରଧ୍ୱଜ ରାଜାଙ୍କର ଚିତ୍ର ଦେଖି ଆକୃଷ୍ଟ ହୋଇ ଚନ୍ଦ୍ରଧ୍ୱଜ ରାଜାଙ୍କ ନିକଟକୁ ଶୁକକୁ ଦୂତରୂପେ ପଠାଇଛି। ଶୁକ ରାଜାଙ୍କ ସମ୍ମୁଖରେ ଚନ୍ଦ୍ରରେଖାର ରୂପ ବର୍ଣ୍ଣନା କରି କହୁଛି—ବୈଶାଖ ମାସ ଶୁକ୍ଳପକ୍ଷ ଦଶମୀ ଦିନ ସ୍ୱୟମ୍ବର ହେବ। ଆପଣ ସେଠାକୁ ବିଜେ ହେବେ। ଆପଣ ଯଦି ନ ଯିବେ, ତା ହେଲେ ରାଜକୁମାରୀ ପ୍ରାଣତ୍ୟାଗ କରିବ।

× × ×

ସ୍ୱୟମ୍ବର ହୋଇ ବିବାହ ପରେ ରାଜା ଚନ୍ଦ୍ରଧ୍ୱଜ ଓ ରାଣୀ ଚନ୍ଦ୍ରରେଖା ପରିଚାରମାନଙ୍କ ସହିତ ଉପବନ ବିହାର କରିବାକୁ ଯାଇଅଛନ୍ତି। ଉପବନରେ ବୁଲିବା ପରେ ରାଜା ରାଣୀଙ୍କୁ ବେଶ କରାଇ ଅଛନ୍ତି। ସେହି ବେଶକୁ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ବର୍ଣ୍ଣନା ପ୍ରସଙ୍ଗରେ ଏକ ସମୟରେ ଦିନ, ରାତି, ବର୍ଷା, ଶରତ, ହେମନ୍ତ, ଶୀତ, ବସନ୍ତ ଓ ଗ୍ରୀଷ୍ମ ଋତୁର ବର୍ଣ୍ଣନା କରିଅଛନ୍ତି। ଏହା ପରେ ରାଜା ଓ ରାଣୀ ଗୃହକୁ ଫେରି ଆନନ୍ଦରେ ଶୟନ କରିଅଛନ୍ତି।

———

କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ କୃତ

# ଚନ୍ଦ୍ରରେଖା

ରାଗ—ଚୋଖି

ଏଥୁ ଅନନ୍ତରେ ଶୁକ    ରସିକବର ବିବେକ
ଯେ ନୃପତିଳକ ଚନ୍ଦ୍ରଧ୍ୱଜ ଛାମୁରେ
ମିଳ ପ୍ରକାଶିଲ୍ ବାଣୀ    ଶୁଣିବାକୁ କୀରବାଣୀ
ସେ ନରେଶମଣି ଆଣି ଧଇଲ୍ କୋଳେ
ସସ୍ନେହରେ ଧୀରେ ପଚ୍ଛରେ,
କହ କୀରବର ଥିଲୁ କେଉଁ ଦେଶରେ । ୧ ।

---

୧—ରସିକବର ଓ ଜ୍ଞାନୀ ରାଜଶ୍ରେଷ୍ଠ ଚନ୍ଦ୍ରଧ୍ୱଜ ଛାମୁରେ ଶୁକ ପ୍ରବେଶ ହୋଇ ବାକ୍ୟ ପ୍ରକାଶ କରିବା ହେତୁ, ସେହି ନୃପଶ୍ରେଷ୍ଠ କୀରବାଣୀ ଶୁଣିବା ଇଚ୍ଛା କରି, ଶୁକକୁ କୋଳରେ ଧରି ପ୍ରଶ୍ନ କଲେ—ହେ କୀରବର ! ତୁ କେଉଁ ଦେଶରେ ଥିଲୁ କହ ।

କହୁଅଛୁ ଶୁକବର ଶୁଣ ଦଣ୍ଡଧର ବର
ଶିବ ନକେତନପୁର ଅବନୀ ସାର
ନୃପତି ବଧୂଶେଖର ସକଳ ଗୁଣ ମନ୍ଦିର
କଳାବତୀ ନାମେ ପଟ୍ଟ-ମହିଷୀ ତାର
ଜାତ କଲ୍ ଏକ ନନ୍ଦନ
ମଦନ ମୋହନ ତ୍ରିଭୁବନ ବନ୍ଦନ । ୨ ।

ଏତେ ଶୁଣି ନରପତି ହୋଇଲ୍ ହରଷ ମତି
ବସ୍ତୁରେ କରିଗିଅଛୁ ନୃପ ଦୃହିତା
ଯୋଗିନୀ ଯୋଗରେ କରି ମନୋରଥ ସିଦ୍ଧକାଙ୍କ୍ଷ
ନମୋନମ ଶ୍ରୀକଧାସ୍ତୁ ପାବତୀ ପତି
ବୋଲେ ପୁଣି କର ପ୍ରକାଶ,
ଶୁକ କହି ଭିତରକୁ କାହାର ବଶ । ୩ ।

---

୨—ରାଜାଙ୍କର ବାକ୍ୟ ଶ୍ରବଣ କରି ଶୁକ କହୁଅଛୁ—ପୃଥ୍ୱୀ ମଧ୍ୟରେ ଶ୍ରେଷ୍ଠ ଶିବନକେତନପୁରରେ ବଧୂଶେଖର ରାଜା ଅଛନ୍ତି । ପଟ୍ଟମହିଷୀଙ୍କର ନାମ କଳାବତୀ ଅଟେ । ତାଙ୍କରି ଗର୍ଭରୁ ତ୍ରିଭୁବନ ବନ୍ଦନ, ମଦନ ମୋହନ ଜାତ ହୋଇଅଛୁ । ଏହି ପଦରେ 'ର' ଓ 'ନ' ଅନୁପ୍ରାସ ଅଛୁ ଏବଂ ରଭ ସହିତ ଉପମା ଅଛୁ ।

୩ – ଏହା ନରପତି ଶୁଣି ଆନନ୍ଦ ମନରେ ବସ୍ତୁର କରି କହିଲେ, ନୃପନନ୍ଦନ ଓଠାଇଅଛୁ । ଏହି ସମୟରେ ଯୋଗିନୀ ପ୍ରବେଶ ହୋଇ, ମନୋରଥ ସିଦ୍ଧକାଙ୍କ୍ଷ ପାବତୀପତିଙ୍କୁ ସ୍ମରଣ କଲେ । ଚନ୍ଦ୍ରଧ୍ୱଜ ପୁଣି ପ୍ରକାଶ କଲେ— ହେ ଶୁକ ! ଅନ୍ୟ କଥା କହ । ଶୁକ କହିଲ୍—ଭିତରକୁ ଆସିବା ହୁଅନ୍ତୁ । ଏହି ପଦରେ 'ର' ଅନୁପ୍ରାସ ଅଛୁ ।

କୀର କହେ ଆହେ ରାଜ ସେ କଳାବତୀ ତନୁଜା
ବାଞ୍ଛାରେ ହର ଗିରିଜା ପଦେ ସେବିଲେ
ଦୃଢ଼ ଭଗତି ସେ ଘେନି ପ୍ରସନ୍ନ ହେଲେ ସେ ବେଳି
ତେଣୁ ଶିବା କଳାରେ କୁମାରୀ ଲଭିଲେ
ଚନ୍ଦ୍ରରେଖା ନାମ ତାହାର
ସେ ପାଳନା କରିବାରୁ ଏ ମୋ ଶରୀର । ୪ ।

ସେ ସୁନ୍ଦରୀ ରମ୍ଭା ପର ଗନ୍ଧର୍ବ ଦମ୍ଭ ନିବାର
ଚଞ୍ଚଳ ତର ତରଙ୍ଗ କୁଟିଳାପାଙ୍ଗୀ
ଗୃରୁ ଚନ୍ଦ୍ର ସହୋଦରୀ ପୀତାମ୍ବର ଅଙ୍ଗ ଧର
ଏତେ କରି ସେ କଟଶୋଷୀ କନକାଭଙ୍ଗୀ
ଚନ୍ଦ୍ରମୁଖୀ ରତି ସମାନେ
ମହାସନ୍ତାପି ହୋଇଛନ୍ତି କାମଜ୍ୱଳନେ । ୫ ।

---

୪—କୀର କହୁଛି—ହେ ରାଜା, ସେ କଳାବତୀ ରାଣୀ ଝିଅପ୍ରାପ୍ତି ନିମିତ୍ତ ହର ପାର୍ବତୀଙ୍କୁ ସେବା କଲେ । ତାଙ୍କର ଦୃଢ଼ ଭକ୍ତିରେ ପ୍ରସନ୍ନ ହେବାରୁ ଶିବା କଳାରେ କୁମାରୀ ଜାତ ହେଲା । ସେ କୁମାରୀର ନାମ ଚନ୍ଦ୍ରରେଖା ଅଟେ । ସେ ମୋତେ ପାଳନ କରିଅଛି ।

୫—ସେ ରାଜନନ୍ଦିନୀ ରମ୍ଭା ପରି, ସଙ୍ଗୀତରେ ପ୍ରବୀଣା ହେତୁ ଗନ୍ଧର୍ବମାନଙ୍କ ଦମ୍ଭ ଭାଙ୍ଗି ପକାଉଅଛି । ତରଙ୍ଗଠାରୁ ଚଞ୍ଚଳତା ଅଧିକ ପ୍ରକାଶ ହୋଇଅଛି ଏବଂ ସେ କୁଟିଳାପାଙ୍ଗୀ ଅଟେ । ସେ ଲକ୍ଷ୍ମୀତୁଲ୍ୟା ଅଟେ । ପୀତାମ୍ବର ଧାରିଣୀ । ଶରୀର ସ୍ୱର୍ଣ୍ଣ ପରି । ଚନ୍ଦ୍ରମୁଖୀ ରତି ସମାନ ଅଟେ । ସେ କାମଜ୍ୱାଳାରେ ଅତି ସନ୍ତାପି ଅଟେ । ଏହି ପଦରେ 'ର' ଅନୁପ୍ରାସ ଓ ତରଙ୍ଗ, ଲକ୍ଷ୍ମୀ, ସ୍ୱର୍ଣ୍ଣ, ଚନ୍ଦ୍ର, ରତି ସହିତ ଉପମ କରାଯାଇଅଛି ।

ସେ ନବ ନାଗରୀମଣି ନଷ୍ଟେ ମନ୍ଦୋଦରୀ ଜଣି
ଦଇତ ଅନୁରାଗିଣୀ ହୋଇଛୁ ଯେଣୁ
ରାମ ପତି ଦରଶନ ପ୍ରସନ୍ନ କରେ ସୁମନ
ସୁବାସିନୀ ତାରା ପରି ବୋଲନ୍ତି ତେଣୁ
ସରସ୍ୱତୀ ପ୍ରାୟେ ସୁକେଶୀ
ବୀଣା ବାଣୀରେ ପାରଇ ବ୍ରହ୍ମାଙ୍କୁ ତୋଷି । ୬ ।

ସୁପ୍ରେମଶୀଳା ରଚନ ନୟନ ନମିଷ ହୀନ
ବୋଲି ଅମର ବରକୁ ଇଚ୍ଛା ନ କଲା
ବସୁ ଯକ୍ଷ ବିଦ୍ୟାଧର ଭୁରଙ୍ଗମ ବେନାପୁର
ଶୋଭା ଅନୁରୂପ ନୃପ ଏକ ନୋହିଲା
ସେ ସୁନ୍ଦରୀ ସୁନ୍ଦର ସାର
ଧଇର୍ଯ୍ୟ ଭାଙ୍ଗି ପାରଇ ଯୋଗୀଶେଖର । ୭ ।

---

୬—ସେ ନାଗରୀମଣି ମନ୍ଦୋଦରୀଠାରୁ ଅଧିକ ଅଟେ । କାରଣ, ମନ୍ଦୋଦରୀ ଦଇତାନୁରାଗିଣୀ ହୋଇଅଛୁ । ଚନ୍ଦ୍ରରେଖାର କଟି କ୍ଷୀଣ ଅଟେ । ସୁନ୍ଦର ପତି ଦରଶନରେ ମନ ବଳାଇଅଛୁ । ସେ ସୁବାସିନୀ ଅଟେ । ଚନ୍ଦ୍ର ଉଦୟରେ ତାରା ପରି ହୋଇଅଛୁ । ସୁକେଶୀ ସରସ୍ୱତୀ ପରି ହୋଇଅଛୁ । ବାଣୀ ଅତି ମଧୁର ଅଟେ । ସରସ୍ୱତୀ ବୀଣା ବାଣୀରେ ବ୍ରହ୍ମାଙ୍କୁ ସନ୍ତୋଷ କଲା ପରି ହୋଇଅଛୁ । ଏହି ପଦରେ ନାୟିକାକୁ ପଦ୍ମିନୀ ଭୁଲ୍ୟ ବର୍ଣ୍ଣନ କରାଯାଇଅଛୁ ।

୭—ଦେବତାମାନଙ୍କର ନିଦ୍ରା ହେଲେ ନୟନ ମୁଦ୍ରିତ ହୁଏ ନାହିଁ । ଏଣୁ ସେ ପ୍ରେମଶୀଳା ଅମର ବରକୁ ଇଚ୍ଛା କଲା ନାହିଁ । ବସୁ, ଯକ୍ଷ, ବିଦ୍ୟାଧର ପ୍ରଭୃତି ଚତୁର୍ଦ୍ଦଶ ଭୁବନରେ ତାର ଅନୁରୂପ ବର ମିଳିଲା ନାହିଁ । ସେ ସୁନ୍ଦରୀ ସୁନ୍ଦର ସାର ଅଟେ । ସେ ମହାଯୋଗୀମାନଙ୍କ ଯୋଗକୁ ଭାଙ୍ଗି-ପାରେ ।

ଏ ଯେନ ଜନକ ତାର କରିଅଛୁ ସ୍ୱୟମ୍ବର
ଦେଶେ ଦେଶେ ଆସି ଘର ନେବେ ରାଜନ
ଅତି ସମ୍ଭାରେ ସେ ପୁରେ ପ୍ରବେଶ ହେଲେ ଶୁଭରେ
ବଇଶାଖ ସିତପକ୍ଷ ଦଶମୀ ଦିନ
ପଦ୍ମକରେ ପଙ୍କଜମାଳା
ଯେନ ଇଚ୍ଛାସୁଖେ ସୁଖ ବରିବ ବାଳା । ୮ ।

ଏମନ୍ତେ ପୁସ୍ତକ ଯେନ ମିଳିଲେ ଏକ ଯୋଗିନୀ
ବାଧିବଶେ କରକ ଉଦଧି ଭୁମୁରେ
ଯଥୋଚିତ ଧନମାନ ପାଇ ସେ ହୋଇ ପ୍ରସନ୍ନ
ସେ ଗ୍ରନ୍ଥ ପ୍ରସଙ୍ଗମାନ କହିଲେ ଧୀରେ
ଶୁଣି ବାଳା ସ୍ନେହ ବଢ଼ିଲା
ତହିଁ ଚିତ୍ର ଶୋଭିତ ରୂପ ଦେଖିଲା । ୯

---

୮—ଏହି ହେତୁ ତାର ପିତା ସ୍ୱୟମ୍ବର କରିଅଛୁ । ଏଣୁ ଘର ଅସି ରାଜ୍ୟରୁ ରାଜାମାନଙ୍କୁ ନିମନ୍ତ୍ରଣ କରି ନେବେ । ରାଜାମାନେ ବୈଶାଖ ଶୁକ୍ଳ ପକ୍ଷ ଦଶମୀ ଦିନ ସେ ରାଜ୍ୟରେ ଅତି ସମ୍ଭାରେ ପ୍ରବେଶ ହେବେ । ରାଜକୁମାରୀ ପଦ୍ମକରରେ ପଙ୍କଜ ମାଳା ଧରି ଇଚ୍ଛାସୁଖରେ ବରଣ କରିବ ।

୯—ଏହି ସମୟରେ ଏକ ଯୋଗିନୀ ଚିତ୍ର ପୁସ୍ତକ ନେଇ କରକ ଦେଶ ପାଶରେ ପ୍ରବେଶ ହେଲା । ଯଥୋଚିତ ସମ୍ମାନ ପାଇ ଯୋଗିନୀ ପ୍ରସନ୍ନ ହୋଇ ଗ୍ରନ୍ଥର ସମସ୍ତ ବିଷୟ ବୁଝାଇଲା । ସେହି ପୁସ୍ତକରେ ଆପଣଙ୍କର ରୂପ ଦେଖି ସ୍ନେହ ବଢ଼ିଲା । କରକ—ଡାଳିମ୍ବ ବୀଜ ଓ କୁଆପଥର । ଏହି ପଦରେ କରକ ସହିତ ଦନ୍ତର ଉପମା ଦିଆ ଯାଇଅଛୁ ।

ଯେତେ ଅନୁରାଗ ତୋର କହିବ କେତେ ପ୍ରକାର
କରିଥିବ ଧରମ ଦେବ ହିଁ ଗୋଚର
ଯୋଗିନୀ କର ପୁସ୍ତକ ଯେଣୁ ସ୍ୱତନ୍ତ୍ର ଆଲୋକ
କରୁଛୁ ଫୁଲ ଶାୟକ ଶର ପ୍ରହାର
ଯାହା ଯେବେ ଥିବ ଜୀବନେ
ଦରଶନେ ଯତ ମିଥ୍ୟା ହୋଇବ ମନେ । ୧୦ ।

ତୁମ୍ଭକୁ ବରଗି ମୋତେ ଏତେ କହିଲା ସୁଚତୁରେ
ଏ ମୋର ବେଦନା ସ୍ମର ପୁରେ କହିବ
ନରେନ୍ଦ୍ର ଇନ୍ଦ୍ର ତୁମ୍ଭରେ ସ୍ୱୟମ୍ବରକୁ ଏ ପୁରେ
ବିଜୟ କଥା ବିଳମ୍ବ ଯେବେ ଶୁଣିବ
ନିଶ୍ଚେ ନ ଆସିବେ ଜୀବେଶ
ଆସିଲେ ହେଁ ଦେଖିବେ ମୋହର ବିନାଶ । ୧୧ ।

---

୧୦—ଯେତେ ତୋର ଅନୁରାଗ ମୁଁ କେତେ କହିବ ? କେବଳ ଧର୍ମଦେବ ସୂର୍ଯ୍ୟ ଗୋଚର କରିଥିବେ । ଯୋଗିନୀ ହସ୍ତର ପୁସ୍ତକ ଦ୍ୱାରା ସ୍ୱତନ୍ତ୍ର ଆଲୋକ-ପାତ ହେବା ହେତୁ କନ୍ଦର୍ପ ଶରରେ ପୀଡ଼ିତ ହୋଇଛୁ । ଯାହା ଯେବେ ଜୀବନରେ ଥିବ, ତା ହେଲେ ଯତ କ ମିଛ ଜଣାପଡ଼ିବ । ଏହି ପଦରେ 'ର' ଅନୁପ୍ରାସ ଅଛି ।

୧୧—ତୁମ୍ଭକୁ ମୋତେ ପଠାଇ ତାହାର ବେଦନା କହିବାକୁ କହିଛି । ରାଜ-ଶ୍ରେଷ୍ଠଙ୍କୁ କହିବୁ, ସ୍ୱୟମ୍ବରକୁ ସେ ନିଶ୍ଚୟ ଆସିବେ ! ଯଦି ସେ ବିଳମ୍ବରେ ଆସନ୍ତି, ତା ହେଲେ ମୋର ବିନାଶ ଶୁଣିବେ ।

ନଇଲେ ମୋତେ ଝଦିତ  ହୋଇବ ପ୍ରମାଦ ହିତ
ହୋଇବ କଥାରେ କିଛି ସଂଶୟ ନାହିଁ
ତାଙ୍କ ଚରଣ ସୁସେବା  ଇଚ୍ଛାରେ ମୋ ଜୀବ ଯିବା
ସଫଳ ହେବଳ ପହୁଁ ଥିବୁ ତୁ ରହି
ସେ ଧର୍ମରକ୍ଷକ ପୁର ତ
ସୁମରଣ ହେଉଥିବ ମୋ ଦୃଢ଼ବ୍ରତ । ୧୨ ।

ଯେବେ ଶୁଭକର୍ମ ତାର  ଧରିବ ସେ ତୁମ୍ଭ କର
ତୁମ୍ଭର ହିଁ ଭାଗ୍ୟ ଥିଲେ ତାକୁ ଲଭିବ
ଅଛି ପରସ୍ପର ଭାଗ୍ୟ  ହୋଇବ ସମ୍ଭୋଗ ଯୋଗ
ଏ କଥା ନିଶ୍ଚେ ରାଜୀବ ସମ୍ଭବ ଭବ
ସେ ଜଗତ ଯୁବତୀ ସାର
ତୁମ୍ଭେ ପୁରୁଷ ଉତ୍ତମ ରାଜନବର । ୧୩ ।

---

୧୨—ସେ ରାଜକୁମାର ଯଦି ନ ଆସନ୍ତି, ତା ହେଲେ ମୋର ପ୍ରାଣ ନିଶ୍ଚୟ ଯିବ । ତାଙ୍କ ଶ୍ରୀଚରଣ ସେବାରେ ମୋର ଜୀବନ ଯାଉ, ସେତିକି ସଫଳ ହେବ । ରେ ଶୁକ ! ତୁ ତ ଥିବୁ, ସେ ଧର୍ମରକ୍ଷକଙ୍କ ନିକଟରେ ମୋର ଏହି ଦୃଢ଼ବ୍ରତ କଥା କହିବୁ । ସେତେବେଳେ ସ୍ମରଣ କରୁଥିବ ।

୧୩—ତାର ଯେବେ ଶୁଭକର୍ମ ଥିବ, ତା ହେଲେ ତୁମ୍ଭର କର ଧାରଣ କରିବ । ତୁମ୍ଭର ଭାଗ୍ୟ ଥିଲେ ତାକୁ ଲାଭ କରିବ । ପରସ୍ପର ଭାଗ୍ୟରେ ସମ୍ଭୋଗ ଥିବା ଜଣାଯାଉଅଛି । ଏ କଥା ପ୍ରଜାପତି ନିଶ୍ଚୟ ଠିକ୍ କରି-ଅଛନ୍ତି । ସେ ହେଉଛି ଜଗତରେ ସାର ଯୁବତୀ, ତୁମ୍ଭେ ମଧ୍ୟ ପୁରୁଷଶ୍ରେଷ୍ଠ ଅଟ ।

ଏମାନ ଶୁଣି ରାଜନ ହୋଇଲ ହରଷ ମନ
ସଜଳ ହେଲ ଲୋଚନ ଯୁଗଳ ବାଣୀ
କହନ୍ତି କୋମଳ କରି ସେ ନରପତି କୁମାରୀ
ଚରଣ ସେବକ ପରି ନିଶ୍ଚେ ମୁଁ ଜାଣି
ରଖିଥିବ ଏହି ସବାଗ
ଯିବ ସ୍ୱୟମ୍ବର ଦିନ ଯାଆନ୍ତି ଆଗ । ୧୪ ।

ଯୋଗିନୀ କେଉଁଠାରେ ଥିଲେ ସେ ପୁସ୍ତକ ଦେଖାଇଲେ
ତହୁଁ ତାର ଶୋଭାରୂଚ ଲୋଚନେ ଦେଖି
ମୋର ସେ ନବଯୁବତୀ ପ୍ରସାଦ ଗିରିଜାପତି
ବାଣୀ ତହୁଁ ଶୁଣି ହେଲେ ମଦନେ ଦୁଃଖୀ
ଅଙ୍ଗେ ଧରିଅଛି ଜୀବନ
ଯିବ ସଂଶୟ ଛେଦିଲ ତୋ ଆଗମନ । ୧୫ ।

---

୧୪—ଏ କଥା ଶ୍ରବଣରେ ରାଜାଙ୍କର ନୟନ ଯୁଗଳ ଆନନ୍ଦରେ ସଜଳ ହୋଇ ଏବଂ କହିଲେ ଯେ, ସେ ନୃପକୁମାରୀର ଚରଣ ସେବକ ପରି ନିଶ୍ଚେ ଜାଣିବ । ଏହି ସବାଗ ରଖିଥାଏ । ମୁଁ ନିଶ୍ଚୟ ସ୍ୱୟମ୍ବରକୁ ଆଗ ଯିବି ।

୧୫—ଯୋଗିନୀ କେଉଁଠାରେ ଥିଲେ ଶହପୁସ୍ତକ ଦେଖାଇଥିଲେ । ତାର ଶୋଭା ଦେଖିଥିଲି । ଗିରିଜାପତିଙ୍କ ପ୍ରସାଦରୁ ସେ ଯୁବତୀ ମୋର ନିଶ୍ଚୟ ହେବ । ସେ ଯୁବତୀର ଶୋଭା କଥା ଶୁଣି କାମରେ ଦୁଃଖୀ ହୋଇଅଛି । କେବଳ ଜୀବନ ଧାରଣ କରିଥିଲି । ତୋର ଆଗମନରେ ସଂଶୟ ଦୂର ହେଲା ।

ଚଞ୍ଚୁ ଧରୁଅଛୁ ତୋର ତାର ପରି ମୁହିଁ ତୋର
କରିଥିବୁ ଏ ବଗୁର ଆଜନ୍ମ ସୁଖୀ
ଯୁମୁରେ କହିବ ଏତେ ଅଷ୍ଟରତନ ପ୍ରାପତେ
ସେ ଯେସ୍ନେ ତୋଷିଲସ୍ତେ ରହେ ଆଜନ୍ମ ଦୁଃଖୀ
ଭୃଙ୍ଗ ପଦ୍ମ ବକାଶ ଯାଏ
ଯେସନେ ତେସନ ମୁଁ ତାହାର ସନ୍ଦରଶେ । ୧୬ ।

ପୂର୍ବ ତପ କରିଥିଲି ଅନୁଗ୍ରହ ପାତ୍ର ହେଲି
ଅଖଣ୍ଡିତ ହୋଇଥିଲେ ଚନ୍ଦ୍ରବଦନ
ଦରଶନରେ ଈକ୍ଷଣ ବଚନ ଶୁଣି ଶ୍ରବଣ
ପବିତ୍ର କରିବ ହେବ ସୁଖ ସଦନ
ଏତେ କହି ଚଞ୍ଚୁ ଧଇଲି
ଅମୃତ ଅଶନ ଦେଇ ମେଲାଣି କଲି । ୧୭ ।

---

୧୬—ତୋର ଚଞ୍ଚୁ ଧରି କହୁଛି—ମୁଁ ତାର ପରି ବଗୁର କରିଥିବୁ । ସୁନ୍ଦରୀ ଯୁମୁରେ ଏତିକ କହିବୁ । ଆଜନ୍ମ ଦୁଃଖୀ ଅଷ୍ଟରତ୍ନ ପ୍ରାପ୍ତିରେ ଯେପରି ଆନନ୍ଦ ହୁଏ, ମୁଁ ଯେପରି ହେଲି । ପଦ୍ମ ବିକାଶ ହେଲେ ଭ୍ରମର ଯେପରି ହୁଏ, ତାହାର ସନ୍ଦରଶରେ ମୁଁ ସେପରି ହେଉଛି । ପଦ୍ମସଦୃଶ ରାଜକୁମାରୀ ଏବଂ ଭୃଙ୍ଗସଦୃଶ ରାଜକୁମାରଙ୍କର କଳ୍ପନା କରାଯାଇଅଛି ।

୧୭—ପୂର୍ବ ତପସ୍ୟା ଫଳରୁ ତାର ଅନୁଗ୍ରହ ପାତ୍ର ହେଲି । ଚନ୍ଦ୍ରବଦନ ଅଖଣ୍ଡିତ ହୋଇଥିଲି । ତାର ଦରଶନରେ ଆଖି ଏବଂ କାନ ପବିତ୍ର କରିବ ଏବଂ ସୁଖୀ ହେବ । ଏପରି କହି ଶୁକର ଚଞ୍ଚୁ ଧରି ମିଠା ଫଳ ଖାଇବାକୁ ଦେଇ ମେଲାଣି କଲି ।

ତାର ଆଜ୍ଞା ଘେନି ଶିରେ    ଶୁକ ଚଳେ ଖରତରେ
ସୁକୁମାରୀ ଯହିଁ ଅଛି ମିଳ ସେ ପୁରେ
ଦେଖି ତାଙ୍କୁ ପଦ୍ମମୁଖୀ    ହୋଇଲ ପରମ ସୁଖୀ
କାର୍ଯ୍ୟସିଦ୍ଧି ଅବଧି ଆଶସେ ଚିତ୍ତରେ
ଦୂତଗଣ ଗତିରୁ କରି
ଶୁକ ମୁଖ ଚୁହିଁ ବାଳା ଧୀରେ ପଚାରେ । ୧୮ ।

ହେଲ ରାଜା ଦରଶନ    ଏ ମୋର ବେଦନାମାନ
କହିବାର ଅବଧାନ କଲେ କି କହ
ନୋହିଲେ ଏ ଚିତ୍ରରୂପ    ଦରଶନାନ୍ତର ନେହ
ନୋହୁ ଜୀବ ଯିବାଯାଏ ନାହିଁ ସନ୍ଦେହ
କେବଳ ତୋ ପ୍ରସନ୍ନ ମୁଖ
ଦରଶନେ ଦୂର ହେଲା ସଂଶୟ ରଖ । ୧୯ ।

---

୧୮—ରାଜା ଆଜ୍ଞା ପାଇ ଶୁକ ଅତି ବେଗରେ ରାଜକୁମାରୀ ଯେଉଁଠାରେ ଥିଲା, ସେଠାରେ ମିଳିଲା । ତାଙ୍କୁ ପଦ୍ମମୁଖୀ ଦେଖି ସୁଖୀ ହେଲା । ଜାଣିଲା, କାର୍ଯ୍ୟସିଦ୍ଧି ହୋଇଅଛି । ଦୂତମାନଙ୍କର ଗତି ଦେଖି ଜଣାପଡ଼େ । ଶୁକ ମୁଖ ଚୁହିଁ ବାଳା ଧୀରେ ପଚାରୁଅଛି—

୧୯ । ହେ ଶୁକ, ରାଜଦର୍ଶନ ହୋଇ ମୋର ବେଦନା କହିଲୁ କି ? ସେ ମୋର ବେଦନା ଶ୍ରବଣ କଲେ କି ? ଏ ଚିତ୍ର ରୂପ ଦେଖିବା ପରେ ଜୀବନ ଶେଷଯାଏ ଭୁଲି ହେବ ନାହିଁ । ତୋର ପ୍ରସନ୍ନ ମୁଖ ଦେଖି ମୋର ସଂଶୟ ଦୂର ହୋଇଅଛି ।

ଶୁକ୍ର ଶୁଣି କହେ ବାଣୀ ଶୁଣ ରେ ତରୁଣୀମଣୀ
ଶୁଣ ଭାଗ୍ୟବନ୍ତ ପ୍ରାଣୀ ବସୁରେ ଯାହା
ସେ ହୋଇଲା ଯାଏ ସିଦ୍ଧି କରଇ ଏ ବଧି ବଧି
ଶତମ୍ବଦ ହୋଇ ହୁଏ ସୁକୃତ ସାହା
ତୁ ତ ମହାଭାଗ୍ୟ ଆକର
କମ୍ପା ନ ଭଜିବ ଚିତ୍ତେ ସେ ନୃପବର । ୨୦ ।

ତୋର ଆଜ୍ଞା ଘେନ ଶିରେ ପ୍ରବେଶ ହୋଇ ସେ ପୁରେ
ଆସ୍ଥାନ ଉପରେ ନରପତି ଗ୍ରମୁରେ
ଦେଖି ଅତି ସରାଗରେ ବସାଇ ସେ ମୋତେ କରେ
ପଗ୍ଭରିଲେ ଜଣାଇଲ ଯେଉଁ କାର୍ଯ୍ୟରେ
କରିଥିଲ ଗମନ ଶୁଣି
ଏକା ପ୍ରବେଶ ହୋଇଲ୍ ନରେଶମଣି । ୨୧ ।

---

୨୦—ରେ ତରୁଣୀମଣି ଶୁଣ । ଭାଗ୍ୟବନ୍ତ ପ୍ରାଣୀ ଯାହା ବସୁରିଥାଏ, ତାହା ସିଦ୍ଧ ହେବାଯାଏ ଶତମ୍ବଦ ହେଉ ସୁକୃତ ସାହାଯ୍ୟ କରେ । ତୁ ତ ମହାଭାଗ୍ୟର ଆକର ଅଟୁ, ସେ ରାଜା କାହିଁକି ନ ଭଜିବ !

୨୧—ତୋର ଆଜ୍ଞା ଘେନ ମୁଁ ରାଜପୁର ଆସ୍ଥାନ ଉପରେ ନୃପତି ପାଖରେ ପ୍ରବେଶ ହେଲି । ମୋତେ ଦେଖି ଅତି ଆନନ୍ଦରେ ହସ୍ତରେ ବସାଇ ପଗ୍ଭରିଲେ—କେଉଁ କାର୍ଯ୍ୟରେ ଆସିଅଛୁ ? ଏହା ଶୁଣି ମୁଁ ଯେଉଁ ସକଣେ ଯାଇଥିଲି କହିବା ଆରମ୍ଭ କରିବା ହେତୁ, ସେ ନୃପତି ମୋ ସହିତ କଥା ହେବା ପାଇଁ ଭିତରକୁ ନେଲେ ।

ଏ ଯୋଗିନୀ ଥିଲେ ଚକ୍ଷି   ଏହି ପୁସ୍ତକରେ ରକ୍ଷି
ତୋର ସ୍ୱରୂପ ଚିତ୍ରକ ଅକ୍ଷରେ ଲେଖି
ତୁ ଯେ ଅନୁରୂପ କନ୍ୟା   କରୁଛୁ ବିଧି ଘଟଣା
ପ୍ରତ୍ୟକ୍ଷ ହୋଇବା ପାଏ ହୋଇଛୁ ଦୁଃଖୀ
ଚକୋର ସେ ବର ହୃଦୟ
ତୋର ବଦନ ହୋଇଲା ଚନ୍ଦ୍ର ଉଦୟ । ୨୨ ।

ଏମନ୍ତ ଶୁଣି ସୁକେଶୀ   ଉଲ୍ଲାସ ସାଗରେ ଭାସି
ଶୁକବରକୁ ଆଶ୍ୱାସି ଆହାର ଦେଲା
ହୋଇଅଛୁ ପଥଶ୍ରାନ୍ତ   ଭୋଜନ କର ତୁରନ୍ତ
ସମସ୍ତ ଜଣାଣ କର ବୋଲି ବୋଇଲା
ପର ଉପକାରୀ ତୁ ଶୁକ
ଅଧୀନେ ଉପକାର ତ ନୁହେଁ ଅଧିକ । ୨୩ ।

---

୨୨—ଏହି ସମୟରେ ଯୋଗିନୀ ପ୍ରବେଶ ହୋଇ ତୋର ସ୍ୱରୂପ ଚିତ୍ରକ ଲେଖିଲେ । ତୁ ଯେ ଅନୁରୂପ କନ୍ୟା ଅଛୁ । ଏହା ବିଧି ଘଟଣା କରିଅଛି । ପ୍ରତ୍ୟକ୍ଷ ହେଲେ ଦୁଃଖ ଯିବ । ସେ ବର ହୃଦୟ ଚକୋର ହୋଇ, ତୋର ବଦନକୁ ଚନ୍ଦ୍ର ଉଦୟ ମନେ କଲା । ଚନ୍ଦ୍ର ଉଦୟରେ ଚକୋର ଆନନ୍ଦ ହେବା ପୌରାଣିକ ଅଟେ ।

୨୩—ଏହା ଶୁଣି ରାଜକୁମାରୀ ଆନନ୍ଦରେ ଶୁକକୁ ଆଶ୍ୱାସନା ଦେଲା ଏବଂ କହିଲା—ତୁ ପଥଶ୍ରାନ୍ତ ହୋଇଅଛୁ । ହେ ପରୋପକାରୀ ଶୁକ, ଭୋଜନ ସାରି ସମସ୍ତ କଥା କହ । ଏହା ଶୁଣି ଶୁକ କହିଲା—ଅଧୀନର ଉପକାର ବଡ଼ କଥା ନୁହେଁ । ଏହା ନୀତିବଚନ ଅଟେ ।

ମତ୍ସ୍ୟରୂପେ ଅବତରି ଭୁବନେ ବିହାର କରି
ବେଦ ଉଦ୍ଧାରିଲେ ଶଙ୍ଖାସୁର ନିବାରି
କୂର୍ମ ରୂପରେ ପୁଣି ଜଗତ ଧୃତ ଧରଣୀ
ଦଶନେ କଲାତ କଲେ ହୋଇ ସେ ହରି
ତାଙ୍କ ଚରିତ୍ର ନଶି ବାସରି
ଉପେନ୍ଦ୍ର ଭଞ୍ଜ ଭଣେ ଏ ଗୀତ ସାର । ୨୪ ।

———

ରାଗ—ବଙ୍ଗଳା ଶ୍ରୀ

ଦେଖିଲେ କୁସୁମ— ବନ ଶୋଭାବନ
ମଧ୍ୟରେ ମଣି ମଣ୍ଡପ
ବିଶେଷ ଫୁଲ ବିକାଶ ମକରନ୍ଦ
ପିନେ ସେ ମତ୍ତ ମଧୁପ । ୧ ।

---

୨୪—ମତ୍ସ୍ୟାବତାର ହୋଇ ଜଳରେ ଭ୍ରମଣ କରି ଶଙ୍ଖାସୁର ମାରି ବେଦ ଉଦ୍ଧାର କରିଥିଲେ । କୂର୍ମରୂପେ ଜଗତ ଧାରଣ କରିଥିଲେ । ଏପରି ମତ୍ସ୍ୟ, କୂର୍ମ, ବରାହ ତିନି ଅବତାରଙ୍କୁ ଉପେନ୍ଦ୍ର ଭଞ୍ଜ ଦିନ ରାତ ଚିନ୍ତା କରି ଏ ଗୀତ ସାର ଲେଖିଲେ ।

———

୧—ରାଜା ଓ ରାଣୀ କୁସୁମ ବନରେ ଶୋଭା ନିରୀକ୍ଷଣ କରିବା ଉଦ୍ଦେଶ୍ୟରେ ଉପବନ ବିହାର କଲେ । ସେ ଉପବନରେ ଗୋଟିଏ ମଣି ମଣ୍ଡପ ଅଛି । ଫୁଲ ଫୁଟିଛି, ଭ୍ରମରଗଣ ମକରନ୍ଦ ପାନରେ ମତ୍ତ ହୋଇଅଛନ୍ତି ।

ଏକ ସର ଅଛି ନିର୍ମିତ ହୋଇଛି
ଦିବ୍ୟ ଜଳଯନ୍ତ୍ର ସାର
ନରପତି କର ଧରି ଗ୍ରୀମାବର
ବିସ୍ତୀର୍ଣ୍ଣ ବନଶୀକର । ୨ ।

ମଦନ ପବନ ବହୁଛି ତହିଁରେ
ତହୁଁ ଶୀତଗନ୍ଧ ଘେନ
ଭ୍ରମର ଝଙ୍କାର ଏମନ୍ତ ପ୍ରକାର
କି କାମ କାହାଳୀ ଧ୍ୱନ । ୩ ।

କନ୍ଦର୍ପ ଦର୍ପକ ହୋଇବା ଯେମନ୍ତ
କେତେକ ଅଛି ତହିଁରେ
କଛି ବେଳ ତହିଁ ଭ୍ରମି କାନ୍ତା କାନ୍ତ
ବଜେ କଲେ ମଣ୍ଡପରେ । ୪ ।

---

୨—ସେ ଉପବନରେ ଗୋଟିଏ ସରୋବର ଅଛି । ଯେଉଁଠାରେ ସୁନ୍ଦର ଜଳଯନ୍ତ୍ର ନିର୍ମାଣ ହୋଇଅଛି । ରାଜାଙ୍କର କର ଧରି ରାଣୀ ଭ୍ରମଣ କଲାବେଳେ, ବିସ୍ତାରିତ ବନଶୀରେ ଯେପରି ମହ୍ୟାଦ ଲାଗନ୍ତି ସେହିପରି ମନେ ହେଲା ।

୩—ସେହି ଉପବନରେ ଶୀତଳ ଗନ୍ଧ ଗ୍ରହଣ କରି ମଦନ ପବନ ବହୁଅଛି ଏବଂ ଭ୍ରମରମାନଙ୍କର ଗୁଣୁ ଗୁଣୁ ଶବ୍ଦ କାମର କାହାଳୀ ଧ୍ୱନି ପରି ଶୁଣାଯାଉଛି । କୋକିଳ ସ୍ୱର ଓ ଭ୍ରମର ଗୁଞ୍ଜନ କାମର କାହାଳୀ ଧ୍ୱନି ବୋଲି ଭ୍ରମ ହୁଏ ।

୪—କନ୍ଦର୍ପ ଦର୍ପକ ହେବା ପାଇଁ ସେହି ଉପବନରେ କେତେକ ପଦାର୍ଥ ଅଛି । ଏ ସବୁ ପରିଦର୍ଶନ କରି କାନ୍ତ ଓ କାନ୍ତା ( ରାଜା ଓ ରାଣୀ ) ବୁଲି ବୁଲି ମଣ୍ଡପ ଉପରେ ବଜେ କଲେ । ସେ ଉପବନରେ ପଦ୍ମ, ଅଶୋକ, ବକୁଳ, ମଲ୍ଲୀ, ନୀଳୋତ୍ପଳ ପ୍ରଭୃତି ଫୁଲମାନେ ଫୁଟିଛନ୍ତି । କୋକିଳର ସ୍ୱର ଏବଂ ମୃଦୁ ମନ୍ଦ ମଳୟ ସମୀରଣ ବହୁଛି । ଏହିପରି କନ୍ଦର୍ପର ଉଦ୍ଦୀପକ ଜିନିଷଗୁଡ଼ିକ ଥିବାରୁ ମଦନ-ଦର୍ପକ ବୋଲାନ୍ତି । କନ୍ଦର୍ପ ସମସ୍ତଙ୍କର ଦର୍ପ ଭାଙ୍ଗିଦିଏ । ଯୋଗୀମାନଙ୍କର ଯୋଗ ଭାଙ୍ଗିଦିଏ । କେବଳ ମହାଯୋଗୀ ଶିବଙ୍କର ଯୋଗ ଭାଙ୍ଗିବା ଇଚ୍ଛାରେ ଗର୍ବ ଦେଖାଇବାରୁ ଶିବ ଅନଙ୍ଗ କରି ଦେଇଥିଲେ ।

'ନରେଶ ଦେଖିଲେ ଆଦେଶ ପରକେ
ରାଣୀଙ୍କୁ ବେଶ ବଧାନ
ରଖି ବେଗ ଚଳି ଫୁଲମାନ ତୋଳି
ଗୁନ୍ଥ କରି ମାଳାମାନ । ୫ ।

ଚତୁରୀ ସନ୍ଦୋହ ଆଜ୍ଞା ପରମାଣେ
ବେଶବଧି ରଖିଗଲେ
ସୁମନ ହୋଇ ସୁମନ ମାନ ତୋଳି
ମାଳ କରି ଆରମ୍ଭିଲେ । ୬ ।

ଏଣେ ଚନ୍ଦ୍ରଧ୍ୱଜ ବାଳା ସରସିଜ
ବଦନେ ଚୁମ୍ବନ ଦେଇ
କହଇ ସୁନ୍ଦରୀ ସୁବେଶ କରି ମୁଁ
କର ପବନ କରଇ । ୭ ।

---

୫—ରାଜା ଦେଖିଲେ, ରାଣୀଙ୍କୁ ବେଶ ବଧାନ କରିବା ଉଦ୍ଦେଶ୍ୟରେ ପରିଚାରିକାଗଣ ବେଶ ବଧାନ ରଖି ଫୁଲ ତୋଳି ମାଳା ଗୁନ୍ଥିବା ନିମନ୍ତେ ଶୀଘ୍ର ଚଳିଗଲେ ।

୬—ରାଣୀଙ୍କର ମଧୁର ଆଜ୍ଞା ପ୍ରମାଣେ ବେଶବଧି ରଖି, ଅତି ଆନନ୍ଦରେ ଫୁଲମାନ ତୋଳି ଫୁଲମାଳ ଗୁନ୍ଥିବା ଆରମ୍ଭ କଲେ ।

୭—ଏହି ସମୟରେ ରାଜା ଚନ୍ଦ୍ରଧ୍ୱଜ ଚନ୍ଦ୍ରରେଖା ରାଣୀଙ୍କର ସରସିଜ—ପଦ୍ ବଦନରେ ଚୁମ୍ବନ ଦେଇ କହିଲେ—ହେ ସୁନ୍ଦରୀ, ମୁଁ ତୁମ୍ଭଙ୍କୁ ସୁବେଶ କରି ହସ୍ତ ପବନ କରିବ ।

ଶୁଣି ମଦାଳସି ମନ୍ଦ ମନ୍ଦ ହସି
କହଇ କୋମଳ କରି
ପରୀକ୍ଷିବ କାନ୍ତ କହ ମୋତେ ଅଛ୍ଛ
ଅପାର ଦୟାରୁ ବରୀକରି । ୮ ।

ଅନ୍ତର ଲିପିକା ବନ୍ଧରେ ହୋଇବ
ରମଣ ରମଣୀ ଆଗେ
କିଛ୍ଛୁ ପ୍ରସଙ୍ଗ ପ୍ରକାଶ କରୁଥିବ
ଗୀତ ହେବ ବୋଲ ବେଗେ । ୯ ।

ଶୁଣି ରାଜନ ହୋଇଲେ ତୋଷ ମନ
ବଚନ କେ ପାରୁ କହି
ସାରସ୍ୱତ ଶାସ୍ତ୍ର ଯେ ଭଣେ ଯେଣୁ ଅଛ୍ଛ
ତୁରିତ କବିତା ହୋଇ । ୧୦ ।

---

୮—ଏହା ଶୁଣି ରାଣୀ ଅଳ୍ପ ଅଳ୍ପ ହସି (ସ୍ମିତ ହାସରେ) କୋମଳ କରି କହୁଅଛନ୍ତି—ହେ କାନ୍ତ, ଅପାର ଦୟାରୁ ବରୀକରି କରିଅଛ୍ଛ ଆପଣଙ୍କୁ କେତେକ ବିଷୟ ପରୀକ୍ଷିବ ।

୯—ହେ ପ୍ରାଣପ୍ରିୟ, ଅନ୍ତରଲିପି ବନ୍ଧରେ ରମଣ ଓ ରମଣୀ ଆଗରେ କିଛ୍ଛୁ ବିଷୟ ପ୍ରକାଶ କରୁଥିବ, ଗୀତ ହୋଇଥିବ, ଏପରି ଗୋଟିଏ ସ୍ମରଣ କରି ଶୀଘ୍ର ପ୍ରକାଶ କରନ୍ତୁ ।

୧୦—ରାଣୀଙ୍କର ପ୍ରଶ୍ନ ଶୁଣି ରାଜା ଅତି ସନ୍ତୋଷ ହେଲେ । ଏହି ଆନନ୍ଦ କହି ହୁଏ ନାହିଁ । ଚନ୍ଦ୍ରଧ୍ୱଜ ସରସ୍ୱତୀଙ୍କୁ ଚିନ୍ତା କରି ଶୀଘ୍ର ଗୋଟିଏ କବିତା ରଚନା କରି କହିଲେ—

ଶମ୍ବର ଅରି ଯେ ସମୁଦ୍ରେ ବାନ୍ଧିଲେ
ବନ୍ଧ କାହିଁ ରଘୁବୀର
ଶିବା ଶିବାର କ ହୃଦେ ବହିଥିଲେ
ଅସାର ବୋଲନ୍ତି ନର । ୧୧ ।

ହର ଭଜ ଭବ ସିନ୍ଧୁରୁ କ ଲଭ
ସୁର ନଦୀ କ ନଦୀର
ଅମର ଗଣରେ ସିନ୍ଧୁ ମନ୍ଥନରେ
କ ଲଭିଲେ ଦିଗମ୍ବର । ୧୨ ।

ଯେତେବେଳେ ହେଲୁ ମାନନୀ ସଜନୀ
କ ଚିନ୍ତିଲି ମନେ ମୋର
ବୋଇଲି ଘୋର ବିପତ୍ତିରୁ ଉଦ୍ଧର
ମାଧବ କୃପାସାଗର । ୧୩ ।

---

୧୧—ଶମ୍ବରାସୁରର ଶତ୍ରୁ କିଏ ? ରଘୁବଂଶ ବୀର ରାମଚନ୍ଦ୍ର କେଉଁ ପଦାର୍ଥରେ ସେତୁବନ୍ଧ ବାନ୍ଧିଲେ ? ଶିବା ଶିବଙ୍କର କ ପଦାର୍ଥ ହୃଦୟରେ ଧାରଣ କରିଥିଲେ ? ନରମାନେ କାହାକୁ ଅସାର ବୋଲି କହନ୍ତି ? ଶିବା—ପାର୍ବତୀ ଓ ଶିବ ।

୧୨—ହର ଭଜନରେ ଭବସିନ୍ଧୁରୁ ମନୁଷ୍ୟ କଣ ହୁଏ ? ସୁର ନଦୀ—ଗଙ୍ଗାଙ୍କୁ କଣ କହନ୍ତି ? ଯେତେବେଳେ ସମୁଦ୍ର ମନ୍ଥନ ହେଲା, ସେତେବେଳେ ଦେବଗଣଙ୍କ ମଧ୍ୟରେ ଦିଗାମ୍ବର କଣ ପାଇଥିଲେ ?

୧୩—ହେ ସଜନୀ, ଯେତେବେଳେ ତୁ ମାନିନୀ ହେଲୁ, ମୁଁ ମନରେ କଣ ଚିନ୍ତା କଲି ଜାଣୁ ? ହେ ମାଧବ, କୃପାସାଗର, ମୋତେ ଘୋର ବିପତ୍ତିରୁ ଉଦ୍ଧାର କର ।

ଏହ୍ନ ପଦରୁ ଛଳ ଘେନ ରାଜନ
କହଇ ପ୍ରିୟେ କହତା
ଯେତେ ଯତନେ ବସ୍ତରଲେ ନୋହ୍ବବ
ମୋହର ଯେ ତୋଷମତା । ୧୪ ।

କର ଧରୁଅଛୁ ତୋତେ ମୋ ପ୍ରମାଣ
ଶିଘ୍ରରେ ଏହ୍ନ ବନ୍ଧରେ
ଯେତେ ପଦ ଇଚ୍ଛା ବୋଲ ପଙ୍କଜାକ୍ଷୀ
ଗୋଷ୍ଠ କୃପା କର ବାରେ । ୧୫ ।

ଯୁବତୀ ବସ୍ତରେ ଗୀତ ପ୍ରାନ୍ତ ପଦ
ହୋଇଥିବ ଅର୍ଥକାର
ଏତେକ ତ ହେଲା ଏ ବନ୍ଧ କେବଳ
ହୋଇବ ଆନ ପ୍ରକାର

---

୧୪—ଏହ୍ନ ପଦରୁ ରାଜା ଚନ୍ଦ୍ରଧ୍ୱଜ ଛଳ ଘେନ କହ୍ବଲେ—ହେ ପ୍ରିୟେ, ଯେତେ ଯତନେ ବସ୍ତର କଲେ ମଧ୍ୟ, ଏହ୍ନ କହତା ମୋର ସନ୍ତୋଷ ବିଧାନ କର ପାରବ ନାହିଁ ।

୧୫—ରେ ପଙ୍କଜାକ୍ଷୀ ! ତୋର କର ଧରୁଅଛୁ, ମୋର ପ୍ରମାଣ ଅଛୁ । ଶୀଘ୍ର ଏହ୍ନ ବନ୍ଧରେ ଯେତେ ପଦ ଇଚ୍ଛା ପ୍ରକାଶ କର । ରେ ଗୌରାଙ୍ଗୀ, ଥରେ କୃପା କର ଏହ୍ନ ପଦର ଅର୍ଥ କହ ।

୧୬—ଯୁବତୀ ରଚନ କହ୍ବଲା—ଗୀତର ଶେଷ ପଦ ଏହାର ଅର୍ଥ ହୋଇଥିବ । ଏତକରେ ଏହ୍ନ ବନ୍ଧ ଶେଷ ହେଲା । ଅନ୍ୟ ପ୍ରକାର ବନ୍ଧ ହେବ । "ମାଧବ କୃପାସାଗର" ଏହ୍ନ ପଦର ପ୍ରଥମ, ଦ୍ୱିତୀୟ, ତୃତୀୟ, ଚତୁର୍ଥ, ପଞ୍ଚମ, ଷଷ୍ଠ, ସପ୍ତମ ଅକ୍ଷର ସହ ଶେଷ ଅକ୍ଷର ଯୋଗ କଲେ ଉତ୍ତର ହେଲା—ମାର, ଧର, ବର, କୃର, ପାର, ସାର, ଗର ।

ଏତେକ ବସ୍ତୁର ନରେଶ ଜଳିତ
ଦୁକୂଳେ ଅଞ୍ଜନ କରି
କୁରଙ୍ଗ ମଦ ତିଳକରେ ଲେଖାଇ
ମଧ୍ୟରେ ନବକଶୋଭା ।୧୭।

କେ କଣ୍ଠୋପମକେ ରଥବର ପଦ
କେଉଁ ମନୋଜ ଆୟୁଧ
କେ ଚନ୍ଦ୍ର ଅରି କେ ଅମୂଲ୍ୟ ରତନ
କେ ଦୁଃଖହର ପ୍ରସିଦ୍ଧ ।୧୮।

ନିଶାବରମା କେ ଅନନ୍ତ କେ ଅବା
ବସ୍ତୁର କି ନିରନ୍ତର
ଶଙ୍ଖ ଚକ୍ର ଗଦା ପଦ୍ମ କଉସ୍ତୁଭ
ମଣିମା ପୀତ ଅମ୍ବର ।୧୯।

---

୧୭—ଏପରି ବସ୍ତୁର ନରେଶଙ୍କ ଦ୍ୱାରା ଜଳିତ ଦୁକୂଳେ ଅଞ୍ଜନ କରି କୁରଙ୍ଗମଦ-କସ୍ତୁରୀରେ ତିଳକ ମସ୍ତକ ମଧ୍ୟରେ ଲେଖାଇଲ ।
ଦୁକୂଳ—ବସ୍ତ୍ର, କୁରଙ୍ଗ ମଦ—କସ୍ତୁରୀ ।

୧୮—ରାଜକୁମାରୀ ପ୍ରଶ୍ନ କଲ—କେ କଣ୍ଠର ଉପମା ଅଟେ । ରଥର ଚକ କାହାକୁ କହନ୍ତି ? କନ୍ଦର୍ପର ଅୟୁଧ କାହାକୁ କହନ୍ତି ?

ଚନ୍ଦ୍ରର ଶତ୍ରୁ କିଏ ? ଅମୂଲ୍ୟ ରତ୍ନ କାହାକୁ କହନ୍ତି ? କିଏ ଦୁଃଖ ହରଣ କରେ ?

୧୯—ନିଶାବରମା କିଏ ? ଅନନ୍ତ କାହାର ନାମ ? ବସ୍ତୁର ନିରନ୍ତର କିଏ ? ଶଙ୍ଖ, ଚକ୍ର, ଗଦା, ପଦ୍ମ, କଉସ୍ତୁଭ । ମଣିମା—ରାଜା, ପୀତ ଅମ୍ବର ।

ପଡ଼ି ରାଜନ ହେଜ ଅର୍ଥ ବଧାନ
ଲଭିଲେ ମନେ ହରଷ
ଅତି ଅନୁରାଗେ ସେ ପ୍ରିୟବତୀଙ୍କ
କଲେ ମନୋହର ବେଶ । ୨୦ ।

ଲୋଟଣୀ ଛନ୍ଦେ କରି ଗୁରୁ କବରୀ
ବିରଚିତ ଫୁଲ ଗଭା
ଆଖି ଖୋସିଗଲା ଉପମା ଲସିଲା
ଦିଶିଲା ଉତ୍ତମ ଶୋଭା । ୨୧ ।

ମଣ୍ଡିଲା ଝଟକ ହାଟକ କେତକ
ଗତି ସୁଛଟକ କରି
ସେ ଶୋଭା ଗୁହିଁଲେ ଯୋଗୀନ୍ଦ୍ର ହୋଇଲେ
ନ ପାରିବେ ଧୃତି ଧରି । ୨୨ ।

---

୨୦—ଏହି ପଦଗୁଡ଼ିକ ପଢ଼ି, ଅର୍ଥବିଧାନ ସ୍ମରଣ କରି ମନରେ ଆନନ୍ଦ ହେଲେ । ପ୍ରିୟବତୀ ଚନ୍ଦ୍ରରେଖାଙ୍କୁ ଅତି ଅନୁରାଗରେ ମନୋହର ବେଶ କଲେ ; କଣ୍ଠର ଉପମା—ଶଙ୍ଖ । ରତ୍ନବରପଦ—ଚକ୍ର । ମନୋଜ ଆୟୁଧ—ପଦ୍ମ । ଚିହ୍ନ, ଶବ୍ଦ—କଳଙ୍କ । କୌମୋଦକୀ ଗଦା ।
କୌମୋଦକୀ ଗଦା ଜ୍ୟୋତ୍ସ୍ନା କଳଙ୍କୋ ବିମଳେମଳେ ।
ଅମୂଲ୍ୟ ରତ୍ନ—କୌସ୍ତୁଭ ମଣି । ଦୁଃଖ ହରଣକର୍ତ୍ତା—ରାଜା । ନାଶା—ହଳଧା । ଅନନ୍ତ—ଅମ୍ବର । ଏହି ଉତ୍ତର ହେଲା ।

୨୧—ଗୁରୁ କବରୀକୁ ଲୋଟଣୀ ଛନ୍ଦରେ ବାନ୍ଧି ବିରଚିତ କରି ଫୁଲଗଭା ଦେବାରୁ ଏପରି ଶୋଭା ଦିଶିଲା ଯେ, କହି ହେବ ନାହିଁ । ଆଖି ଖୋସିଗଲା । ଉପମା ସମସ୍ତ ପରାସ୍ତ ହୋଇ ସୁନ୍ଦର ଦିଶିଲା ।

୨୨—ବେଶ ହେବା ପରେ ହାଟକେ ଓ କେତକ ପରି ଶରୀରେ ଝଟକ ଉଠିଲା । ଗତି ମଧ୍ୟ ଚଞ୍ଚଳ ହେଲା । ଏ ଶୋଭା ଦର୍ଶନରେ ଯୋଗୀନ୍ଦ୍ରମାନେ ମଧ୍ୟ ଧୈର୍ଯ୍ୟ ଧରି ପାରିବେ ନାହିଁ । ହାଟକ—ସୁବର୍ଣ୍ଣ ।

ଚାରୁ ଅଳକାବଳୀ ତଳେ ଚନ୍ଦନ
କଲେ ଯତନେ ରଞ୍ଜନ
ଚତୁଷ୍କୋଣ କରି ମଧ୍ୟରେ କସ୍ତୁରୀ
ବିନ୍ଦୁ କଲା ସୁଶୋଭନ । ୨୩ ।

ତଥି ମଧ୍ୟରେ ସିନ୍ଦୂର ବିନ୍ଦୁ ଦେଲା
ଦିଶିଲା ରୁଚିରତର ।
ଶରଦେ ନିର୍ମଳ ଗଗନେ ଉଦେ କି
ପ୍ରଭାତ ଆସି ମିହିର । ୨୪ ।

ଆକର୍ଷି ଅମର ବଇରୀ ତାପରୁ
ପାଶ ଅତନୁ ନିର୍ମି ଅଛି
ତେଣୁ ମଧ୍ୟଭାଗ ପ୍ରକାଶ ହୋଇଛି
ଏମନ ପ୍ରାୟେ ଦିଶୁଛି । ୨୫ ।

---

୨୩—ଚାରୁ—ସୁନ୍ଦର । ଅଳକାବଳୀ—କେଶସମୂହ ତଳେ ଯତନରେ ଚନ୍ଦନ ରଞ୍ଜନ କଲେ । ଚତୁଷ୍କୋଣ ଚନ୍ଦନ ମଧ୍ୟରେ କସ୍ତୁରୀବିନ୍ଦୁ ଦେବାରୁ ଶୋଭା ଦିଶିଲା ।

୨୪—କସ୍ତୁରୀ ବିନ୍ଦୁ ମଧ୍ୟରେ ସିନ୍ଦୂର ବିନ୍ଦୁ ଦେଲା । ଏଣୁ ଅତି ସୁନ୍ଦର ଦିଶିଲା । ଶରଦ ଗଗନରେ ନିର୍ମଳ ଗଗନରେ ପ୍ରଭାତରେ ସୂର୍ଯ୍ୟ ଉଦୟ ପରି ଦିଶିଲା । ଶରଦ କାଳରେ ଉଦୟକାଳୀନ ସୂର୍ଯ୍ୟ ସହିତ ରାଣୀଙ୍କ ତିଳକର ସିନ୍ଦୂରବିନ୍ଦୁ ଉପମା ଦିଆଯାଇଅଛି ।

୨୫—ରାକ୍ଷସମାନଙ୍କ ତାଡନାଶନ ପାଇଁ ପାଶ ନିର୍ମାଣ କଲା ପରି ତିଳକ ଦିଶିଲା । ଏଥିରେ ମନେହୋଉଛି ଯେ, ମଧ୍ୟଭାଗରେ ଥିବା କସ୍ତୁରୀ ଚିହ୍ନ ମଧ୍ୟରେ ସିନ୍ଦୁର ବିନ୍ଦୁ ପାଶ ପରି ଦୃଶ୍ୟ ହେଲା ।

ଅଞ୍ଜନ ଲୋଚନେ ଅଞ୍ଜନ ରଚନ
ଆକର୍ଣ୍ଣ ସରିକି କଲା
ସହ ସଇବଳ ସମାଳ ସୁନାଳ
କମଳ ପରି ଦିଶିଲା । ୨୬ ।

କସ୍ତୁରୀରେ କରି ଲେଖିଲା ମକର
ସୁନର୍ମଳ ଗଣ୍ଡସ୍ଥଳେ
ଚିବୁକେ ଭ୍ରମରକା ଲେଖି ଲେଖିଲେ
ପଦ୍ମାଳ କୁଚ ଯୁଗଳେ । ୨୭ ।

ଚରଣ ଯୁଗେ କଲା ଅତି ସୁଷମେ
ଅଙ୍କିତ ସରୁ ଅଳତା
ଶୋଭା କି କହିବା ଗୃହିଁଲେ ହୋଇବେ
ଊର୍ଦ୍ଧ୍ୱରେତା ହତ ଚେତା । ୨୮ ।

---

୨୬—କୃଷ୍ଣବର୍ଣ୍ଣ ଆଖିରେ ଅଞ୍ଜନ କର୍ଣ୍ଣ ପର୍ଯ୍ୟନ୍ତ ଲଗାଇଲା । ସମାଳ ଶଇବଳ ସହ ଉତ୍ତମ ଜଳକମଳ ପରି ଦିଶିଲା ।

୨୭—ସୁନର୍ମଳ ଗଣ୍ଡସ୍ଥଳରେ କସ୍ତୁରୀରେ ମକର ଚିହ୍ନ ଲେଖିଲା । ଚିବୁକରେ ଭ୍ରମରକା ଲେଖିଲା । କୁଚ ଯୁଗଳରେ ପଦ୍ମାଳ ଲେଖିଲା ।

୨୮ । ପାଦ ଦୁଇଟିରେ ଅତି ସୁନ୍ଦର ଭାବେ ସରୁ ଅଳତା ଅଙ୍କିତ କଲା । ଏପରି ଶୋଭା ଦିଶିଲା ଯେ, କଥାରେ କହି ହେବ ନାହିଁ । ଏପରି ଶୋଭା ଦର୍ଶନରେ ଯୋଗୀମାନଙ୍କର ଚେତ ଭଙ୍ଗ ହୋଇଯିବ ।

ରହିତ ଦୂଷଣ ବିବିଧ ଭୂଷଣ
ସେ ଯାହା ସ୍ଥାନେ ମଣ୍ଡିଲେ
ତନୁ ଆଚ୍ଛାଦ ନୀଳ ଜାନ ଯେସନେ
ସ୍ନେହେ ଆଲିଙ୍ଗନ କଲେ । ୨୯ ।

ସୁନ୍ଦର ନିଧାନ ସୁନ୍ଦରୀ ରତନ
ଦିଶିଲ୍ ବିବିଧ ଲକ୍ଷ୍ୟ
ସୁର ଚକ୍ରବର୍ତ୍ତୀ କାନ୍ତି ସୁପ୍ରମୋଦ
ବିସ୍ତାରିଅଛି ପ୍ରତ୍ୟକ୍ଷ । ୩୦ ।

ରଜନୀ ପରସ୍ତେ ନକ୍ଷତ୍ର ନିର୍ମଳ
କରେ ଗତାନୁରାଗୀ
ବରଷା ପରସ୍ତେ ନବ ଜଳଧର
ଅଂଶୁକଧାରୀ ସୁହାଗୀ । ୩୧ ।

---

୨୯—ଦୂଷଣଶୂନ୍ୟ ବିବିଧ ଭୂଷଣ ସେ ଯାହା ସ୍ଥାନରେ ମଣ୍ଡନ କଲ ପରେ, ଶରୀରରେ ଅତସରୁ ନୀଳ ବସନ ଆଚ୍ଛାଦନ କଲେ । ସ୍ନେହରେ ଚନ୍ଦ୍ରଧ୍ୱଜ ଚନ୍ଦ୍ରରେଖାକୁ ଆଲିଙ୍ଗନ କଲେ ।

୩୦—ସୁନ୍ଦରୀ ରତନ ରାଜକୁମାରୀ ଚନ୍ଦ୍ରରେଖା ସୁନ୍ଦରର ନିଧାନ ଥିବା ହେତୁ ବିବିଧ ପରି ଦିଶିଲ୍ ! ଇନ୍ଦ୍ରନୀଳ କାନ୍ତି ଅତି ଆନନ୍ଦରେ ବିସ୍ତାର କଲ ପରି ଦିଶେ । ସ୍ତ୍ରୀ ଦେହରେ ନୀଳ ଶାଢ଼ୀ ଥିବାରୁ ଆକାଶ ଓ ବିବସର ଉପମା ଦିଆଯାଇଅଛି ।

୩୧—ରାଜକୁମାରୀର ନଖଗୁଡ଼ିକ ନିର୍ମଳ ଥିବା ହେତୁ ବହରେ ନକ୍ଷତ୍ରମାନଙ୍କ ପରି ଦିଶିଲ୍ । ନବଜଳଦର ବସନ ଧାରଣରେ ବର୍ଷାକାଳ ପରି ଦେଖା-ଗଲ୍ । ନକ୍ଷତ୍ର ସହ ନଖର ଉପମା, ମେଘବର୍ଣ୍ଣ ସହିତ ବସନର ଉପମା ହୋଇଅଛି । ଅଂଶୁକ—ବସ୍ତ୍ର ।

ଶରଦ ପରବେଁ ପରଚେ ଏ ଘେନ
ନିର୍ମଳ ବେଶଡାକାର
ଯେଣୁ ପାକଶାଳୀ ଭରଣ ମଧ୍ୟରେ
ମଣ୍ଡିତ ହେମ ପ୍ରକାର । ୩୨ ।

ଶିଶିର ଜାଣି ହେମପୁର କମଳ
ପରାଭବ ଦନ୍ତ ଦକ୍ଷ
ବସନ୍ତ ପର ବିପିନ ଆଲିଙ୍ଗନେ
ପ୍ରସନ୍ନ ମନ ପ୍ରତ୍ୟକ୍ଷ । ୩୩ ।

ନିଦାଘ ପରବେଁ ଭୁବନେ ସକଳ
ଆଦର ହୋଇଛି ଯେଣୁ
କାନ୍ତ କାନ୍ତା ଅଙ୍ଗେ ବନ୍ଧନ୍ତି ବାଣ ସେ
ଯାହାକୁ ନାଶିଲେ ସ୍ଥାଣୁ । ୩୪ ।

---

୩୨—ଅତି ନିର୍ମଳ ବେଶ ଦେଖାଯାଉ ଥିବାରୁ ଶରତ ଋତୁର ଲକ୍ଷଣ ପ୍ରକାଶ ହେଲା । ଶରତ ଋତୁ ସହ ଦେହର ନିର୍ମଳ ଉପମା ହୋଇଅଛି । ହେମନ୍ତ ଋତୁରେ ପକ୍ୱଶାଳୀ ପୂର୍ଣ୍ଣ କେଦାର ସୁନ୍ଦର ଦିଶେ । ବର୍ଣ୍ଣ ପାଚିଲା ଧାନ ପରି ହଳଦିଆ ଦିଶୁ ଛି । ଏଣୁ ହେମନ୍ତ ଋତୁ ପରି ଦିଶିଲା ।

୩୩—ଶୀତ ଋତୁରେ ବରଫପାତ ହେତୁ ପଦ୍ମ ନଷ୍ଟ ହୋଇଯାଏ । ସେପରି ସମସ୍ତ ପଦ୍ମ ରାଜକୁମାରୀ ଦ୍ୱାରା ପରାସ୍ତ ଲଭିଅଛି । ମୁଖ, ଆଖି, ପାଦ, ହସ୍ତ, ସ୍ତନ ପଦ୍ମକୁ ପରାଭବ ଦେଉଅଛନ୍ତି । ବସନ୍ତ ଋତୁରେ ବନ-ଭ୍ରମଣରେ ଯେପରି ଆନନ୍ଦ ଜାତ ହୁଏ, ରାଜକୁମାରୀର ମନ ସେହିପରି ପ୍ରସନ୍ନ ଦିଶୁ ଛି ।

୩୪—ନିଦାଘ କାଳରେ ସମସ୍ତ ପ୍ରାଣୀଗଣ ଜଳକୁ ଆଦର କରନ୍ତି । ସେହିପରି ଗୃହ ମଧ୍ୟରେ ସମସ୍ତେ ରାଜକୁମାରୀଙ୍କୁ ଆଦର କରନ୍ତି । ଏସବୁ ଦେଖି କନ୍ଦର୍ପ କାନ୍ତ ଓ କାନ୍ତା ଶରୀରରେ ବାଣ ପ୍ରୟୋଗ କଲା ।

ନବଢ଼େ ପୁଣି ନରପତି ବାଳାକୁ
ପୁଣି ଆଲିଙ୍ଗନ କଲେ
ବସନ ଦୂର କରି କରି ଗମନା
ସଙ୍ଗେ ସୁରତେ ମିଳିଲେ । ୩୫ ।

ତରୁଣୀମଣି ବିପରୀତ ସୁରତ
ଆରମ୍ଭିଲା ଶୋଭି ଚିତ୍ତେ
ଯେମନ୍ତ ଉପମା ହୋଇଲା ତହିଁକି
ସୁଷମା ନାହିଁ ଜଗତେ । ୩୬ ।

କବରୀ ବନ୍ଧନ ଫିଟିଲା ଛୁଟିଲା
କଣ୍ଠରୁ ମୋତିହାର
ଅଳକା ଲଳିତ ଆନନ୍ଦୁ ଚଳିଲା
ସ୍ୱେଦବିନ୍ଦୁ ଶ୍ରମେ କରି । ୩୭ ।

---

୩୫—ନରପତି ରାଜକୁମାରୀଙ୍କୁ ଉଲଗ୍ନ କରି ନିବିଡ଼ ଆଲିଙ୍ଗନରେ ସୁରତ ଆରମ୍ଭ କଲେ । କରୀଗମନା—ହସ୍ତୀଗମନା ।

୩୬—ସେହି ସୁନ୍ଦରୀଶ୍ରେଷ୍ଠା ରାଜକୁମାରୀ ବିପରୀତ ରତିକ୍ରୀଡ଼ାରେ ସୁରତ କଲେ । ଏହି ସମୟର ସୁଷମାକୁ ଜଗତରେ ଉପମା ଦିଆଯାଇ ନ ପାରେ, ତାହାର ଉପମା ନାହିଁ ।
ତରୁଣୀମଣି—ଶ୍ରେଷ୍ଠ ନାୟିକା ।

୩୭—ଏହି ରତିକ୍ରୀଡ଼ା ସମୟରେ କବରୀ ବନ୍ଧନ ଫିଟିଗଲା । ବେକରେ ଥିବା ମୁକ୍ତା ହାର ଛୁଟିଗଲା । ମୁଖରୁ ସ୍ୱେଦବିନ୍ଦୁ ଜାତ ହୋଇ ଅଳକା ଧୋଇ ହୋଇଗଲା । ଅଳକା—କେଶ ।

କଟି କାଞ୍ଚିମାଳା ଧ୍ୱନରେ କ୍ଷଣକା
ହୋଇଲେ ସମସ୍ତ ଜାଣି
ନୂପୁର ହୋଇଲ ଏମାନେ ମଉନ
ପାଦେ ଖଞ୍ଜିଲା ରମଣୀ । ୩୮ ।

ଅଧୋମୁଖେ ବକ୍ଷେ ଉରଜ ଯୁଗଳ
କରଜକୁ ଭୟ କରି
ଭକ୍ଷକ କାନ୍ତ ଭୁଜକଣ୍ଠ ଆବୋରି
ଏ ଜ ମନେ ବଖ୍ଣି । ୩୯ ।

ଏମନ୍ତେ ଦମ୍ପତି ସୁରତି ରସରେ
ହୋଇଲେ ହରଷ ମନ
ପଲଙ୍କିତ ହୋଇ ପିନ୍ଧିଲେ ବସନ
ଅପସରଲା ମଦନ । ୪୦ ।

---

୩୮—କଟିରେ ଥିବ କାଞ୍ଚିମାଳା ଏବଂ ପାଦର ନୂପୁର ଏହ ସମସ୍ତ ଜାଣି ଧ୍ୱନି କଲ ।

୩୯—ଉରଜ—ସ୍ତନ ଯୁଗଳ ଅଧୋମୁଖେ ବକ୍ଷରେ ରହିଲା । କାନ୍ତ ଭକ୍ଷକ ଜାଣି କରଜ—ନଖକୁ ଭୟକରି କାନ୍ତର ଭୁଜ ଓ କଣ୍ଠର ଆଶ୍ରୟ ନେଲା । ସ୍ତ୍ରୀର ଭକ୍ଷକ ହେଉଛି ପତି ।

୪୦—ଏପରି ଦମ୍ପତି ସୁରତି ରସରେ ମନ ଆନନ୍ଦ କଲେ । ରତି ଶେଷରେ ପଲଙ୍କିତ ହୋଇ ବାସ ପରିଧାନ କଲେ । ଏକଥା ଜାଣି ପରି କନ୍ଦର୍ପ ଅପସାରଣ କଲ ।

ରତିଶ୍ରାନ୍ତ ହର  ମନ୍ଦ ଗନ୍ଧ ଯୀତ
ମରୁତ ଉଦିତ କଲେ
ଏହି ସମୟରେ  ସବ ପରିଚାରୀ
ବାଳୀ ମିଳି ପୁରରେ । ୪୧ ।

ବିବିଧ ବରନ  ସୁମନ ଗୁନ୍ଥିଣ
ମଳା ଯେନ ରଜା ରାଣୀ
ଗ୍ରୀମୂରେ ଦେଇ  ଅନୁରାଗ ଦେଖାଇ
ହୋଇଲେ ଅନୁରାଗିଣୀ । ୪୨ ।

କେଉଁ ଚତୁରୀ  କରି ରୁରୁ ଚମ୍ପକ
ଭ୍ରମର ଭ୍ରୂରୀ କରି
କହେ ମନ୍ଦ ରାଜ  କୁମରୀ କାନ୍ତକ
ନୋହି ହୋଇଅଛୁ ସରି । ୪୩ ।

---

୪୧—ଉଭୟଙ୍କର ରତିଶ୍ରାନ୍ତ ନିମିତ୍ତ ଗନ୍ଧଯୁକ୍ତ ମନ୍ଦ ସମୀରଣ ଜାତ କଲେ, ଅର୍ଥାତ୍ କାନରେ ବନ୍ଧ ହେଲେ । ଏହି ସମୟରେ ସମସ୍ତ ଦାସୀଗଣ ପାଶରେ ପ୍ରବେଶ ହେଲେ ।

୪୨—ସେହି ଦାସୀମାନେ ନାନା ବର୍ଣ୍ଣ ପୁଷ୍ପରେ ମଳା ଗୁନ୍ଥି ଗ୍ରୀମୂରେ ଦେଇ ଅନୁରାଗ ଦେଖାଇ, ଅନୁରାଗିଣୀ ହେଲେ ।

୪୩—ସେହି ଦାସୀମାନଙ୍କ ମଧ୍ୟରୁ କେଉଁ ଚତୁରୀ ସୁନ୍ଦର ଚମ୍ପାଫୁଲରେ ଭ୍ରୂରୀରେ ଭ୍ରମର କରି କହିଲା—ଏହି ରାଜକୁମାରୀର କାନ୍ତକୁ ସମାନ ନ ହୋଇ ରହିଅଛୁ ।

କେନ୍ଦୁ କେତକୀ ଅଷ୍ଟଦଳ କମଳ
ଆକାରେ ନିର୍ବନ୍ଧ କରି
କହେ ଯେ ଭ୍ରମର ଚୁମ୍ବନେ ରହିବ
ନୃପଜା ଚନ୍ଦ୍ରାଧରୀ । ୪୪ ।

କେଉଁ ଅବଳା ଅମଳା ମାଳା ଦେଇ
ଅଳପ ହସି କହିଲା
କହୁଛି ଏ ମୋତେ ନିର୍ଦ୍ଦୋଷ ବିଧାତା
ବାସ ନିବାସ ନ କଲା । ୪୫ ।

ନବ ମାଳିକା କଳିକାରେ ମାଳିକା
ଦେଇ କେବଣ ବାଳିକା
କହେ ଏକ ହୋଇ ଯେନି ତେଜେ ମୋତେ
ମନ୍ଦରଧର କାଳିକା । ୪୬ ।

---

୪୪—ଅନ୍ୟ ଜଣେ ସଖୀ କେତକୀ ପାଖୁଡ଼ାରେ ଗୋଟିଏ ଅଷ୍ଟଦଳ ପଦ୍ମ ତିଆରି କରି କହିଲା—ଏହି ପଦ୍ମଟି ରାଜକୁମାରୀ ସରି ହୋଇଅଛି । କେବଳ ଭ୍ରମର ରୂପକ ରାଜକୁମାର ଚୁମ୍ବନ ଦେବା ପାଇଁ ରହିଲା । କେତକୀ ଫୁଲ ଫୁଟିବା ଅବସ୍ଥାରେ ଭ୍ରମର ପ୍ରବେଶ କରି ପାରେ ନାହିଁ । କେତକୀର ବର୍ଣ୍ଣ ସହିତ ରାଜକୁମାରୀର ବର୍ଣ୍ଣ ଉପମା ଦିଆଯାଇଛି ।

୪୫—କେଉଁ ଅବଳା ଅମଳା ମାଳା ଦେଇ ଅଳ୍ପ ହସି କହିଲା—ନିର୍ଦ୍ଦୋଷ ବିଧାତା ଏଥିରେ ସୁବାସ ରଖିଲା ନାହିଁ ।
ଅମଳା—ବାସହୀନ ସୁନ୍ଦର ପୁଷ୍ପ ।

୪୬—କେଉଁ ବାଳୀ ନବମାଳିକା—ମଲ୍ଲୀକଢ଼ିରେ ମାଳଟିଏ ଦେଇ କହିଲା—ମେଘ ପର୍ବତକୁ ଆଦର କରି ରହୁଅଛି, ସେପରି ପ୍ରଣୟମାନ ହେଲା । ନଖକୁ ସମାନ ନ ହେବାରୁ ମଲ୍ଲୀକଢ଼ି କହୁଛି, ମୋତେ ତ୍ୟାଗ କଲା ।
ମନ୍ଦର—ପର୍ବତ । କାଳିକା—ମେଘ ।

ହେବ ତେ ନଖର ଉପମେୟ ମୋର
ଅଧର ଏଣୁ ଜବରେଁ
କର ଏ ହାରର ଏହାକୁ ହିଁ ବହ
ଆଦରେ କରକେ ହାର । ୪୭ ।

କେଉଁ ସୁବର୍ଣ୍ଣ ସୁଜାତ ମାଳା ଦେଇ
କହଇ କୋମଳ କରି
ଏ କହେ ମୁଁ ଯଥା କୁସୁମରେ ତ—
ଆରାମରେ ନୃପ କୁମାରୀ । ୪୮ ।

ଏମନ୍ତ ଅନେକ ତରୁଣୀ ଅନେକ
ପ୍ରକାରେ ଧରସ ବାଣୀ
କୁସୁମ ଦେଇ କହନ୍ତେ ତୋଷ ପଞ୍ଚ-
ମହୀ ନୃପଭାମିଣି । ୪୯ ।

---

୪୭—ଅନ୍ୟ ଜଣେ ସଖୀ ମନ୍ଦାର ଫୁଲରେ ହାର କରି ଦେଇ କହିଲା— ଅଧର ସହ ଜବାପୁଷ୍ପର ଉପମା ଥିବାରୁ, ଏହାକୁ ଆଦରରେ ଗ୍ରହଣ କର ।

ଜବା—ମନ୍ଦାର । ଅଧର—ଓଷ୍ଠ ।

୪୮—ଅନ୍ୟ ଜଣେ ସୁବର୍ଣ୍ଣ ସୁଜାତ ମାଳା ଦେଇ କୋମଳରେ କହିଲା— ଆରାମରେ ରାଜକୁମାରୀ ଯେପରି ବସିଅଛନ୍ତି, ମୁଁ କୁସୁମ ମଧ୍ୟରେ ସେପରି ରହିଅଛି ।

୪୯—ଏପରି ଅନେକ ସୁବର୍ଣ୍ଣ ବହୁ ପ୍ରକାର ସନ୍ତୋଷ ବାଣୀ କହି ପୁଷ୍ପମାନ ଦେବାରୁ, ରାଜା ଓ ରାଣୀ ସନ୍ତୋଷ ହେଲେ ।

ରମା ରଚନ । ସୁମନମାନଙ୍କର
ଗ୍ରନ୍ଥିତ ଗ୍ରହଣ କଲେ
ପ୍ରତିବଧ କରି ସେ ପରିବାରୀଙ୍କୁ
ପ୍ରତି ପ୍ରତି କରି ଦେଲେ । ୫୦ ।

ହରଷେ ପ୍ରବେଶ ହେଲେ ନିଜ ବାସେ
ପତ୍ନୀସହ ନୃପବର
ମାଜଣା ମଣୋହି ଧାରି କଲେ ସୁଖେ
ଶୟନ ପଲଙ୍କ ପର । ୫୧ ।

ଅମୃତ ଅଶନ ଶୟନେ ହରନ୍ତି
ପ୍ରତି ଯାମିନି ଦିବସ
ରଜନୀ ଶେଷରେ ନିତ୍ୟ କୃତ୍ୟ ସାରି
ନାନା ଅଭିଳାଷ ରସ । ୫୨ ।

---

୫୦—ରାଜକୁମାରୀ ପରିଚାରିକାମାନଙ୍କର ସୁମନ ମାଳା ଗ୍ରହଣ କରି, ପରିଚାରିକାମାନଙ୍କୁ ଜଣ ଜଣ କରି ପୁରସ୍କାର ଦେଲେ ।

ସୁମନ—ପୁଷ୍ପ । ପ୍ରତିବନ୍ଧ—ପୁରସ୍କାର ।

୫୧—ରାଜା ଓ ରାଣୀ ଅତି ଆନନ୍ଦରେ ଉପବନ ବିହାର ଶେଷ କରି ନିଜ ଗୃହକୁ ପ୍ରତ୍ୟାବର୍ତ୍ତନ କରି, ମଜଣା, ମଣୋହି ଧାରି, ସୁଖରେ ପଲଙ୍କ ଉପରେ ଶୟନ କଲେ ।

୫୨—ଏପରି ଦିନ ଓ ରାତି ଅମୃତ ଖାଦ୍ୟ ଖାଇ, ରଜନୀ ଶେଷରେ ନିତ୍ୟକୃତ୍ୟ ଶେଷ କରି, ନାନା ପ୍ରକାର ରସରେ ଅଭିଳାଷ ବଳାଇ ଚଳନ୍ତି ।

କରୁଣା ସାଗର                    କାଳୀୟଉରୁ ଧର
ମଣ୍ଡଳ ନଟନକାରୀ
କମଳଲୋଚନ                    କଳୁଷ ମୋଚନ
କଳାପୀ କଳାପଧାରୀ । ୫୩ ।

ଖଗେନ୍ଦ୍ର ଆସନ                    ଯେ ପାକ ଶାସନ
ଗର୍ବ ବିନାଶ କରତା
ଖଳ ସଙ୍କୁଳ                    ଜଳରୁହ କମଳ
କଳଙ୍କ ନିର୍ବାଣଦାତା । ୫୪ ।

ଗିରିଜାପତିଙ୍କ                    ମସ୍ତକ ବିହାରୀ
ପଦକମଳ କମଳ
ଗାଢ଼ ସଙ୍କଟ                    କାଟିଲେ ଦ୍ରୌପଦୀର
ଦେଇ ଅଶେଷ ଦୁକୂଳ । ୫୫ ।

ଘୋର ଦୁର୍ଗତି                    ତହିଁ ହତ କାରଣ
ଯାଙ୍କ ଶ୍ରୀଚରଣେ ଶିର
ସେହି ଧ୍ୟାନ ଧନ                    ଉପେନ୍ଦ୍ର ଭଞ୍ଜ
ଶରଣ ନଶି ବାସର । ୫୬ ।

---

୫୩–୫୬—ଯେଉଁ କରୁଣା ସାଗର ଶ୍ରୀକୃଷ୍ଣ କାଳୀୟ ନାଗର ଫଣା ଉପରେ ନାଚ କରିଥିଲେ ଏବଂ ପଦ୍ମ ପରି ନୟନ ଯାହାଙ୍କର, ଯେ ପାପ ନାଶ କରନ୍ତି ଏବଂ ମୟୂରପୁଚ୍ଛ ଧାରୀ, ଗରୁଡ଼ାସନ, ଯେ ଇନ୍ଦ୍ରଙ୍କର ଗର୍ବକୁ ବିନାଶ କରିଥିଲେ, ଯେ ପାପୀମାନଙ୍କର ମୋକ୍ଷଦାତା ଏବଂ ଜଳରୁହ କମଳର କଳଙ୍କ ନାଶକାରୀ, (ଜଳରୁହ—ପଦ୍ମ) ଯାହାର ପଦକମଳ—ପାଦପଦ୍ମ କମଳ ଦଳରୁ ଗଙ୍ଗା ପ୍ରବାହିତ ହୋଇ ଶିବଙ୍କର ମସ୍ତକରେ ପଡ଼ୁଅଛନ୍ତି, ଦ୍ରୌପଦୀର ଗାଢ଼ ସଙ୍କଟ ବେଳେ ଯେ ଅଶେଷ ବସନ ଦାନ କରିଥିଲେ, ଯାହାର ଶ୍ରୀଚରଣ ଘୋର ଦୁର୍ଗତି ହତ କରେ, ସେହି ଶ୍ରୀକୃଷ୍ଣଙ୍କୁ ଉପେନ୍ଦ୍ର ଭଞ୍ଜ ଦିନ ରାତି ସ୍ମରଣ କରି ଶରଣାପନ୍ନ ହେଉଅଛି ।

—୧୦୪—

